# ଜାତୀୟ
# ସମର ସଙ୍ଗୀତ

ନବମ ଭାଗ

ପରିଚାଳକ :—
ଓଡ଼ିଶା ସଙ୍ଗୀତ ପ୍ରଚାର ବିଭାଗ,
କଟକ

ମୂଲ୍ୟ ୦ ୦ /୬ [illegible]

# ଜାତୀୟ ସମର ସଙ୍ଗୀତ

( ପହଲ୍ ଅଖାଡ଼େ ବଢୁ୍ୟ ଚମକଇ—ବୁଢ଼େ )

ଭହଗଂସ ଲୁଣ୍ଡ          ଜେତେ ନ ଭହୁଛ
ଭଲ ଲୋକ ସବୁ ସହଇ ।
ଝୁଲି ଝୁଲି ହାତୀ          ଗଲେ ରାଜପଥେ
ଭୁକି ଭୁକି କୁତା ମରଇ । ୧ ।
ଝୁଞ୍ଜୁଟ୍ ହାତ          ଭସ ନ ଫିଙ୍ଗୁଛ
ଦେଉଳ କି ଢହି ଠଲଇ ।
ସହସ୍ରା ଲୁହରେ          ଘାସ ଫଳେ, ଧୀର—
ପାଣି ପଥରକୁ କାଟଇ । ୨ ।
ସାଜଣ୍ଡିଲ କାଣ୍ଡ          ଯୁଦ୍ଧକୁ ନ ପାର
ପର ଲୁଞ୍ଚି ଘର ନାଶଇ ।
ଅଁଲପ୍ର ଲବନ          ଅଥୟ ତୁଏଃ
ଦଣ୍ଡିଖୋର ପର ଖସଇ । ୩ ।
ଗରଜଲ ମେଘ          ବରଷଇ ନାହିଁ
ଶୁଖିଲ ବିଜୁଳି ମାରଇ ।

ସଂସାର-ପାରକୁ ତୁଲ ତାହିଁ ତାହିଁ
ତୁଳ ତାହାର ନ ଥରଇ । ୪ ।
ପାତାଳ-ଫୁଟଇ ଗଣ୍ଡି ଚେର ଯାଇ
ସେ କି ସହଜରେ ଟଳଇ ।
ଝଞ୍ଜାବାହା ଯାକୁ ସାହାଟି ଅଚଳ
ଦୁଇ ବାହା କିବା କରଇ । ୫ ।

---

( ଦୁଃଖୀଧନ ଚନ୍ଦ୍ରାନନ ରେ—ପ୍ରଭ )

ତନ୍ତୀ ଭାଇ । ତନ୍ତ ପକାରେ ।
ଅନ୍ତରେ ନ ଭରି ଢଳେ ଶଙ୍କାରେ । ପଦ ।
ମଞ୍ଚରେ ତୁ ବସୁଣ ଦେଖ, ତୋର ହେଉ ସ୍ୱଦେଶ ଟେକ,
ରହିବ ଗାଇବ ଏ ଉତ୍କଳ ମନ୍ତ୍ର
ବାଜିଯିବ ରାଜ୍ୟେ ରାଜ୍ୟେ ଡଙ୍କାରେ । ୧ ।
ତୋର ବୁଣା ମୋଟ ଖଦୀର, କଲୁଁ ଯେଣୁ ହତଆଦର,
ସେହି ଦୋଷେ ଅଙ୍ଗ ହେଲୁଣି ଲଙ୍ଗଳା
ଗଲା ଶୁଖିଲଣି ଗଣି ଟଙ୍କା ରେ । ୨ ।
ଗଡ଼ମଲେ ତୋ ପୁଅଝିଅ, ଗଡ଼ିଲା ଏ ନୟନୁଁ ଲୁହ ।
ବଢ଼ିଗଲା ଅମ୍ଳ ବସନ ଶେ ସନ
ଛଡ଼ିଗଲଣି ତ ଦୁଇ ପଖା ରେ । ୩ ।

ସତେ ଲୁ ରେ ମହତ ରଙ୍ଗ,        କସଲବୃ ସ୍ତଲକୁ ସୁଖୀ ।
ଦେଖି ଅଙ୍ଗ ହୁଇ        ଲେଖି ରଙ୍ଗିବ ତା
ସ୍ୱଦେଶୀ ନ ଦେବେ ଗଳେ ଧକ୍କା ଜେ । ୪ ।

---

( ରାଧାଗୋବିନ୍ଦ—ପ୍ରଣ )

ଶୁଣ ତନ୍ତୀପୁଅ ମୋ ହର ଅଳ, ତନ୍ତୀପୁଅ ରେ ।
ଜଳଙ୍ଗିନୀ ନୋହୁ ଉଜ୍ଜଳ ବାଳୀ, ତନ୍ତୀପୁଅ ରେ ।୧।
କର କପାଶୃଷ ମାଣକୁ ମାଣ, ତନ୍ତୀପୁଅ ରେ ।
ସୁଆଁ ଭଣ ସୁତା କାଟିବୁ ପୁଣ, ତନ୍ତୀପୁଅ ରେ । ୨ ।
ନୋଟିରେ ଗୋଟାଇ ଲୁଠିରେ ଦେବୁଁ, ତନ୍ତୀପୁଅ ରେ ।
ଟାଣ ବାଣ ଦେଇ ବୁଣାଇ ନେବୁଁ, ତନ୍ତୀପୁଅ ରେ ।୩।
ବାରହାତ ଲମ୍ବ ନଅ ଗୃଖଣ୍ଡ, ତନ୍ତୀପୁଅ ରେ ।
ପ୍ରସାର ଯେମନ୍ତେ ହେବ ତା ପେଣ୍ଡ, ତନ୍ତୀପୁଅ ରେ ।୪।
ପିନ୍ଧିବେ ତୋ ମାତା ଭଗିନୀ ପତ୍ର, ତନ୍ତୀପୁଅ ରେ ।
ପଦଗଣ୍ଠି ଲୁଚ ଶୋଭିବ ଧଡ଼, ତନ୍ତୀପୁଅ ରେ ।୫।
ଓଢ଼ଣା ଟାଣନ୍ତେ ପିଠି ନ ଦଣ୍ଡ, ତନ୍ତୀପୁଅ ରେ ।
ଅନ ଦେଶମାନ ଗୃହିଁ ନ ହସ୍ତ, ତନ୍ତୀପୁଅ ରେ । ୬ ।
ଗୋଡ଼ ଗାଡ଼େ ହର ବସିଲେ ଲୁହ, ତନ୍ତୀପୁଅ ରେ ।
ଦେଶେ ବସ୍ତ୍ରାଭାବ ରହିବ ନାହିଁ, ତନ୍ତୀପୁଅ ରେ । ୭ ।

---

ଡର ତୁ ନ ଯା ତନୁବାସୁ ଏତେବେଳେ ।
ସର ଯିବ ତୁଚ୍ଛ ମହତ ଦେଖ ବେନି ଡୋଳେ ।
ଭେଦ ଥିଲେ ଭବରେ, ମିଳିବ ତୋ ପାଖରେ
ବାହିରେ ରହିବ ଠେଲ । ୧ ।
ଲଙ୍ଗୁଳ ସନ୍ନ୍ୟାସୀ ବେଶ ବୁଲିଲଣି ସାଜ ।
ତୋ ପତ୍ର ଭାବ ଥାଉଁ ଏ ଜୀବନରେ ଅଛ ।
କେମନ୍ତେ ତୋ ଗନ୍ଧରେ, ସହିବ ଏ ଛିଣ୍ଡରେ ।
ଦେଶବାସୀଙ୍କ ବିପତ୍ତି । ୨ ।
ଜପା ସୂତା ବାପା ଯେବେ କରିବୁ ତୁ ଗୃହ ।
ସେ ବେଳେ ଜାଣ୍ଡ ଜପଣ ବୁଝିବ ତୋ ଦେଶ ।
ପାଷାଣ ତୁ ନୋହୁରେ, ସ୍ୱପଣ ନ ଦେଉ ରେ ।
ସ୍ୱପଣ ସମୟ ଏହୁ । ୩ ।
ସଞ୍ଜ ସକାଳେ ତୋ ତୃଣା ପଖାର୍ଳ କରିବୁ ।
ଅନାଉଁ ଅନାଉଁ ଫୁଲ ଉଠିବ ଏ ବୃକ୍ଷ ।
ଧର୍ମ ଉପବନରେ, ଫୁଟିବ ସୁମନରେ ।
ବାସେ ମୋହିବ ଭୁବନ । ୪ ।

---

( ରାଗ—ଶ୍ରୀ )

ବସନ କର ବପନ, ଜଳିଁବ ଭାଗ୍ୟ-ତପନ ।
କେଣେ ପଳାଇବ ଲାଜ ତାମସୀ ଶଙ୍କା ।

ଯନ୍ତା ତନ୍ତ ଠକଠକ                କାଳେରେ ନ ସିଖୁ ଠିକ,
ଶଙ୍ଖ ଠଙ୍କା ନେଇ ଛଡ଼ା ମାନସଇଙ୍କି ।
ବଙ୍କାଇ ମୁଖକୁ ବସନା ।
ଏଡ଼ା ଭଲେ ପୁରିବ କି ମନ ବାସନା । ୧ ।

ଦନେ ତୋ ଲୁଣା ବସନ,                ବଣ ନଳୀରେ ଅସନ,
କଣଥିଲୁ ତା କେସନ ଯାଉ ରେ ଭୁଲି ।
ଲୁଙ୍ଗି ସ୍ୱଦେଶୀ ଦଶନ,                ଜଇଗଲଣି କି ସନ ?
ଫୁଟି ଗ୍ରନ୍ଥବ ଧର ତୁ ତୋ କଣ୍ଠା ନଳ ।
ଲୁଣ୍ଠି କର ସବଣୀ ତୋର ।
ଦେଖ କାଳେ ଧରଣୀ ଦଶିବ ସୁନ୍ଦର । ୨ ।

ମୋଟ ସୂତା କର ସ୍ତୁଟ,                ଛଅର କରବୁ ମାଠ,
ଅଳାଟ ଶୀତକୁ ଯେମନ୍ତେ ହୃତ ହେବଟି ।
ଝଡ଼ ନଅ ଗୀତ ଗାଇ,                ଭୁଲ ରେ ସ୍ମୃଢ ଫୁସ୍ଲଇ ।
ପାଇହେବୁ ତେବେ ଏହ୍ବ ଉତ୍ତମ ବାଟ ।
ପାଣୁ ପାଇଁ ନ ଡର ଛଳେ ।
ମନ ଥିଲେ ଧନ ମାନ କଣ୍ଠରେ ମିଳେ । ୩ ।

---

ତୁଟାଇ ଦେଇ ମନ୍ତ୍ର ସକଳ ଭ୍ରାନ୍ତି,
ପାଶୋରି ବେନ ଅସ୍ତ ପୁରୁବ ଶ୍ରାନ୍ତି ।
ସ୍ୱାଗତ କର ଶାଶ୍ୱତ ତୁମ ଗରିମାମୟ ଭାରତ,
ଉତ୍କଳ ଭୂଇଁର                ରେଣୁ କଣାଟିକୁ
ଶିରରେ କରି ବନ୍ଦିତ । ୧ ।

ଯେଉଁ ଧରଣୀର ବୁକୁପରେ ଦିନେ,
ଖେଳୁଥିଲେ ଦିନେ ସଦମ୍ଭ ଗହଣେ ।,
ସେହି ଧରଣୀର ବୁକେ (ଅବା) କିଆଁ ଅଳସ ଚରଣ ପଡ଼େ ଥରି,
ଫୁଟାଇ ଦିଅରେ                ଜଡ଼ତା ତନ୍ଦ୍ରା
ନବ ତେଜ ପ୍ରାଣେ ଭରି । ୨ ।

ଭେଦ ପାରୁନାହିଁ ଘନ ଆବରଣ,
ତମସା-ମଳିନ ହୋଇଛି ନୟନ ।
ତୁମ ଦେଶ ମାତା କରୁଣ କ୍ରନ୍ଦନ ଶୁଭୁନାହିଁ କିରେ କାନେ,
ଅକାଳ ଅଶନି                ସମ୍ପାତ ଉଦୟେ
ରହିଛ ରେ ମ୍ରିୟମାଣେ ।୩।

ହରାଇଛି ଯେଉଁ ସୁଯୋଗ୍ୟ ସନ୍ତାନ,
ନାହିଁ କିରେ କେହି କରିବ ପୂରଣ ।
ଅଛ ପରା ତୁମେ କୋଟି ସନ୍ତାନରେ ନାହିଁ କି ତୁମଠି ପ୍ରାଣ,
ପାନକରି ନିତ                ଅମିୟ ପୀୟୂଷ
ତେବେକେ ଏଡ଼ିକି ମ୍ଳାନ ।୪।

ଦେଖି ନାହିଁ କରେ ଅମର ଭାରତ
(ନୀଳାମ୍ବରେ) ପ୍ରାଚୀକୋଳେ ରବି ଉଠେ ନୃପବେ ଜ୍ୱତ
ନୀଳାଚଳ ବଡ଼ ଦେଉଳ ଚୂଳରେ ଉଡେ ଚିହ୍ନ ଫରଫର,
କହୁଁ ଉଠି ଗୃହଁ          ଓଡ଼ିଆ ପୁଅରେ
ନ ପଡ଼ିବେ ଅଉ ଥର । ୫ ।

ସବୁ ଜାତି (ସ୍ୱର) ଅଛି ହୋଇ ଏକ ସାଥି,
ଭୁଲି ହିଂସା ଦ୍ୱେଷ ତେଜି ମନୁ ଭ୍ରାନ୍ତି ।
ଘଉଡ଼ାଇ ଦିଅ          ଅକାଳ ଅଶାନ୍ତି
ସ୍ୱାଗତ କର ଶାନ୍ତି । ୬ ।

---

ମୁକ୍ତ ଅମର ଜୀବନ ଦୃପ୍ତ,
ମୁକ୍ତେ ଜୀବନ ଗଢ଼ିଛୁ ।
ବଳୀୟସୀ ଅମେ ଶତ୍ରୁ ରକତେ,
ମାତୃଚରଣ ଧୋଇଛୁ । ୧ ।
ସମ୍ବଲପୁରୁ ଉତ୍କଳୀ ଦନେ,
ଗଙ୍ଗା-ଗୋଦାବରୀ ଜିଣିଛୁ ।
ଏ ଦେଶ ଯୁବା କାଞ୍ଚୀ ବିଜୟେ,
ଅକ୍ଷୟ ଯଶ ରଖିଛୁ । ୨ ।

ବାପ ଅମର ଈଶ୍ୱର ହତେ,
ରକ୍ତ ଦେଇଛ ଢାଳ ।
ଶତ ଅନ୍ୟାୟ ଅନାଚାରକୁ,
ପଦେ ଦେଇଛ ଦଳ । ୩ ।
କିଏ କହେ ରେ ଓଡ଼ିଆ ପୁଅ,
ସାଗରପଠୁ ନୁହେଁ ।
ଯାଭା ବାଲିରେ ଅକ୍ଷୟ ଯଶ,
ରଖିଲା ଅଜ କିଏ ? ୪ ।
ସାଗରକୋଳେଁ ରତନ ବାନ୍ଧ
ଜହ୍ଲୀ ଦନେ ପସ ।
ଗଢ଼ିଲା ତୁଙ୍ଗ ଦେଉଳ ସାର,
ଚକିତ ବିଶ୍ୱ ସାରା । ୫ ।
ଗୋହିର ଯୁଦ୍ଧ ମୁକୁନ୍ଦ ସେନା,
ପଡ଼େଛି ମନେ ଅଜ ।
କାଞ୍ଚିର ମାନ ରକ୍ଷିବ ପାଇଁ,
ସାଜିଲା ରଣସାଜ । ୬ ।
ମାରଇ ବୀର ମରଇ ଅବା,
ଏ ଦେଶ ବୀର ଜାଣେ ।
ଈଶ୍ୱର ହତେ ଜୀବନ ଦାନ,
ଓଡ଼ିଆ ସ୍ୱର୍ଗ ମଣେ । ୭ ।
ଅମ ଦେଶର ଅତୀତ ଯଶ,
ଗାଉଛି କାଳ ଗୀତ ।

ଫେରାଇ ଅଣ ଉତ୍କଳୀ ସ୍ୱର,
ନ କର ଅଉ ମନ୍ଦ । ୮ ।
ଅମକୁ ଅଭ ଗୃହଁରୁ ଦଣ୍ଡ,
ଜାଗ ଉତ୍କଳୀ ବୀର ।
ବିଶ୍ୱର ହୃଦେ ଜଗତ ପିତା,
ଦେବେ ରେ ପୁରସ୍କାର । ୯ ।

---

( ଧନାଶ୍ରୀ—ଅଠତାଳ )

ବିଜୟ-ଭେରୀ-ନାଦେ କମ୍ପିଲା ରେ ଅବନୀ ।
ନାଗାଦଳ ଧମନୀ ଥରିଲା ରେ । ଧ୍ରୁବ
ଶୋଇଥିଲା କେଶରୀ ଶୁଣି ଶୃଗାଳ ରଡ଼ି
ଫୁଲାଇ ସଟାକେଶ ଉଠିଲା ରେ । ୧ ।
ସେମେଲ ହେଲା ଥକ୍କା, ବାଲ୍ଟି ବ୍ରିଟିଶ ଧକ୍କା,
ହଠାରେ ହୁଟିଲର ପଡ଼ିଲା ରେ । ୨ ।
ଅଫ୍ରିକା ଉପକଣ୍ଠେ, ମରୁ ସାହାରା ତଟେ,
ଜର୍ମାନ ଅଭିଧାନ ଶୁଖିଲା ରେ । ୩ ।
ଧରମୁଁ ଜିନା ଜୟ, ଅଧର୍ମେ ହେଲା କ୍ଷୟ,
ଅଶା କୁଅର ଭଙ୍ଗା ପଡ଼ିଲା ରେ । ୪ ।
ବିଂଶ ବରଷ ତଳେ ଅସି ଛ ଥିଲା ଥରେ,
ଉଖାରି ଦେଲା କ୍ଷତ ଶୁଖିଲା ରେ । ୫ ।

ବ୍ରିଟିଶ-ହିନ୍ଦୁ-ବର        କି ଦମ୍ଭ ହୃଦେ ଧର,
ପଢ଼ିଲୁ ବିଧାତା କି ଛନ୍ଦକୁ ରେ । ୬ ।

---

ମନ ମୋହ କର ଧନ ପେଟ ରଖିଲେ ଭୋକଙ୍କୁ,
କେ ତୋତେ ଦେବ ପରଖି ।
ହେବ ଧରି କିବା ଲାଭ        ତୋର ଯେବେ ନ ଚଳଲୁ,
ଅରେ କଳଙ୍କକୁଳ-ଶଶି । ପଦ ।
ମୁଖ ହୋଇ ତୁ        ବୁଡିଲେ କି ବାଡ଼ ?
ତୋ ପୂର୍ବ ଗାରିମା        ହୋଇବ ଉଜାଡ଼ ।
ତୋଷାମଦେ ଧରିଲେ ତୁ ପର ଗୋଡ଼
(ସେ ଦିନ) ଗୌରବ କି ଯିବ ଖସି ? । ୧ ।
ତୋ ନୀଚ ବୃତ୍ତିର,        ତୁ ସିନା ପ୍ରତୀକ
ତୋ କରମ ଫଳେ        ଭୁଞ୍ଜିବୁ ତୁ ଦୁଃଖ
ଯେ ଦୂଷଣେ ପୁଣି ହସିବ ଲୋକେ
ସେ ପାଇ ତୁ ଏକା ଦୋଷୀ ॥
ଏ ହୀନ ସ୍ୱଭାବ        ଦୂର କରି ତୁ ଛାଡ଼
ମାତୃ ଅସେ ଯୁଦ୍ଧ        ଅଗ୍ରେ ଅଣ୍ଟା ଭିଡ଼
ଶତ୍ରୁଙ୍କରେ ପୂର୍ଣ୍ଣ କର ଦେଶ ଗଡ଼
(ତୋ କୁଳେ) ଲଗା ନା କଳଙ୍କମସୀ ॥

---

( ଅଶାବରୀ—ଏକତାଳି )

ପାଇକ ପୁଅ ରେ ଜାଗ
ତୋର ଭଙ୍ଗା କୁଡ଼ିଆର ଦୁଆର ମୁହଁରେ
ଜଙ୍ଗେ ବସିଲାଣି ବାଘ । ପଦ ।

ନଗଡ଼ ନିଦରେ ଶୋଇଛୁ କେତେ ରେ
ନାକରେ ମାରି ତୁ ତେଲ ।
କୋଣାର୍କ କୋଣୁ ଦେଖରେ ଫିରଙ୍ଗୀ
ଦଖିଲାଣି ଦଳବଳ ।
ଠାକୁ କରେ ସାପ ଦୁନଅଠା ଗୃହଁ
ତୋ ମହ୍ୱରଗି ସ୍ଥା ଅଙ୍ଗ । ୧ ।

ଠାବର ହେଲାଣି ଗାଲ ଯୋଡ଼ିକ ତୋ—
ପିଠିରେ ଲାଗିଲା ପେଟ,
ତଥାପି ଥାପି ତୁ ଓଦାକନା ତହିଁ
କେବେ ପଡ଼ିଛୁ ନପଟ ।
ଚହଲ ପଡ଼ିଛି ଚହଲ ସଂସାରେ
ତୋର ନିନ୍ଦା ପରସଙ୍ଗ ।୨।

ଶୋଷଣି ଭିଡ଼ରେ ଧର ବର୍ଚ୍ଛା ଢାଲ
ରଖ ତୋ ଜାତିର ନାମ,
ପଛଘୁଞ୍ଚା ନାହିଁ ତୋହର ଜାତକେ
ଆଗେ ହାରୁଡ଼ିଲେ ଯମ ।
ତୋ ବଅଁଶେ କାଳ ଦଅନାରେ ତାଳ
ମୁଣ୍ଡରୁ ନ ଖସା ପାଗ । ୩ ।

ନିଜ ଗୋରି ଖୋଜ ବଇର ଅଙ୍କ ତୋ
ଦୁଅରେ ଗରଜେ ଅସି,
ସହସ୍ର ସିଂହର ଶକତି ବେନି ଭୁ
ଝଲକାଇ ଅସ୍ତ୍ର ଅସି;
ଦେଖୁ ସାର ବଣ୍ଟ ନାଃସ୍ତ୍ର ଓଡ଼ିଅର
ହୁମ୍ମୂଳ ସମର-ଜାଗ । ୪ ।

---

ତୋଡ଼ି ପରଜ—ଅଡ଼ତାଳି

ମୋ ଜାତିରେ, ହରଇ ବସନା ଖ୍ୟାତି
ଫିଟିରେ ଅରଣ୍ଟ ଅତି ପ୍ରତିପତ୍ତି
ଶେଷେ ହେଲ ଏହୁ ଗତି । ପଦ ।
ନିତ ଅରିତର ଜପାମାଳୀ ହୋଇଥିଲ
ତୋର ଯଶ ଖ୍ୟାତି
ବଢ଼ିଲ ତୋ ଦାନ ଇନ୍ଦ୍ର ବିକୁଣ୍ଠରେ
ବିଳାସ ବ୍ୟସନେ ମାତି । ୧ ।
ମତି ରଣି ଧର୍ମ ନିବଢିର ପ୍ରତି
ବୁଝି କଲ ରଣ ନୀତି
ପାଢିଲ ଦୁର୍ଭେଦ୍ୟ ବ୍ୟୂହ ଅଗାତର
ଗଙ୍ଗାରୁ କାବେରୀ ଜତି । ୨ ।

ଡାଉଲେ ତୁ ବଳାଗ୍ରଉଳ ଢଙ୍କରେ
ନ ଥିବ ତୋହର ଭୀତ
ମାଉଲ୍ ଅହା କ ବୃଷ୍ଟଭ ଅଟର
ଧ୍ୱାନ ସ୍ୱଦ୍ବର୍ଯେ ସମ୍ଭ୍ରାନ୍ତ । ୩ ।
ହାଗଣାବଳରେ ସାଥୀ ଖେନ ହର
ଜନମ ଭୂମି ବପରୁ,
ବଢ ଜାଲ ବୁଲେ ଡାକନ୍ତି କ୍ଷୁପଢ
ଦେଇ ରକତ-ଅହୁଡ । ୪ ।

---

( ଭୀମ ପଲଶ୍ରୀ—ଦାଦସ୍ର )

ଅନରେ ନ ଦେଇ ମନ    ଚଷାଙ୍କର ଧାନ ବୁଣ
ଡାଳ ତୋର ଅଙ୍ଗରୁ ଝାଳ
ରଖ ଦେଶବାସୀ ପ୍ରାଣ ।
ଲୁ'ଡ ସେ ଦେଶର ସ୍ୱଡ
ଡାଳ ବୁକୁର ରକତ
ଲଢ଼ନ୍ତି ଦୂର ଦେଶରେ    ଯେ ଦେଶ ତରୁଣଗଣ । ୧ ।
କୋଟି କୋଟି ସ୍ୱଜ ତୋର
ନ'ପାଇ ଅନ୍ନ ଅହାର
ଯେଉଁ ଓଦାକନା ଦେଇ    କାତରେ ଡାକନ୍ତି ଶୁଣ ।୨।

କରଯା ଯୋଗ୍ୟ କରମ
ଉପରେ ଅଛ ଧରମ
ଦେଖୁଛ, ସେ ନ ମାନଲେ ( ଦେଶ )
ନମାନୁ ଅଛ ତୋ ଗୁଣ । ୩ ।

---

( ମାର୍ଚିଙ୍ଗ ସ୍ବର )

ଜାଗ ଜାଗ ଜାଗ ଜାଗ, ଜାଗ ଉତ୍କଳ ଯୁବକ ଅଛ (ଘୋଷା)
ଦେଶରେ ଏବେ ପଡ଼ୁଛି ଡାକ
ରଖ ରଖ ନିଜ ଦେଶର ଠେକ
ଯାଉରେ ପ୍ରାଣ ରହୁରେ ଠାଣ
ଉଠୁରେ କୀର୍ତ୍ତି ବଗ୍ରଛ । ୧ ।
ହିଟଲର ଗର୍ବ କରିବା ଖର୍ବ
ଦେଶ ହିତେ ଦେବା ଧନଜନ ସର୍ବ
ଶତ୍ରୁର ବଂଶ କରିବା ଧ୍ୱଂସ
ଜୀବନ ମମତା ତେଜ । ୨ ।
ଗାଅ ଗାଅ ବ୍ରିଟିଶ ଜୟ ଗାନ
ଉଡ଼ାଅ ଗର୍ବେ ବିଜୟ-ନିଶାଣ
ବାଜୁ ଜୟ ଭେରି ଧର ତରବାରି
ନାହିଁ ଧୈର୍ଯ୍ୟ ଯାଉ ଭଙ୍ଗ । ୩ ।

---

( ଠୂଂର )

ବୀର ଓଡ଼ିଆ ଜାତି କେବେ ଡରିବ ନାହିଁ (ଘୋଷା)

ସ୍ମର ତା ପୂରୁବ କଥା          ଦେଶ ପାଇଁ ଦେବ ମଥା
ରଖିଲା ଜାତିର ଟେକ ଜୀବନ ଦେଇ । ୧ ।
କରେ ଧରି କରବାଳ          ଦେଖାଇବ ବାହୁବଳ
ପର ପଦତଳେ କେବେ ନଇଁବ ନାହିଁ । ୨ ।
ମାରି ଶତ୍ରୁ କରି ଜୟ          ସୁବଡ଼ ଓଡ଼ିଆ ପୁଅ
ଗଜପତି କୀର୍ତ୍ତି କଥା ଭୁଲିବ ନାହିଁ । ୩ ।
ଏ ଦେଶ ବୀର ସନ୍ତାନ          ଡରେ କି ଶତ୍ରୁ କମାଣ
ପଛ ଘୁଞ୍ଚା ଏ ଜାତିର ଜାତକେ ନାହିଁ । ୪ ।
ଜାଗିବ ତା ପୂର୍ବ ସ୍ମୃତି          ଶତ୍ରୁ ଅଗେ ଛାତି ପାତି
ମିଶି ସ୍ୱଳେ ବିଜୟଶ୍ରୀ ଦେବରେ ଯାଇ । ୫ ।

---

ଯେ ଦେଖିଛି ସେ କହିବ କି ନ ଥିଲା ଅନ୍ୟ ଦେଶେ ।
ସାଜୁଥିଲା ମୋ ଜନନୀ ନିତି ନୂଆ ନୂଆ ବେଶେ ॥
ଅମ ଦେଶର ସାଧବସୁତ,
ନ ମାନି ଖରା ବରଷା ଶୀତ;

ବୋଇତ ବାହୁ          ଦରିଅ କୂଳେ
ଭୁଲିଥିଲେ ରେ ଦୂର ବିଦେଶେ ।୧।
ବିଶାଳହାତ ଲୁଗା ବାଉଁଶ ନଳେ,
ରଖୁଥିଲେ ଆମ ତନ୍ତୀ ସେକାଳେ,
ଆମ ଦେଶ ପୁଅ          ହାତ ଲାଗିଲେ ରେ
ପାଣି ଉପରେ ପଥର ଭାସେ । ୨ ।
ଆସିବ ସେଦିନ ଆସିବ ଫେରି,
ଜାଗି ଉଠ ଆଉ ନ କର ଡେରି,
ବିଜୟ-ବାନା          ପୂରୁବ ପରି
ଉଡ଼ିବ ପୁଣି ଚେତାଇ ବିଶ୍ୱେ । ୩ ।

---

ଭୟ ନାହିଁ ଥୟ ହୁଅ ଜୟ ଆମ ପାଇଁ ଥୁଅ
ଦିନେ ହେବ ଅରିରକ୍ତେ ଜନନୀ ଅଞ୍ଚଳ ଧୁଆ । ଘୋଷା ।
ଏ ଦେଶ ବିଦ୍ରୋହ ଶତ୍ରୁ
ଆସିଛି ଯେଉଁ ଅଗ୍ରତ
ନଇଁଛି ସବୁରି ମଥା ଅଙ୍କୁଶରେ ହେବ ନୂଆ । ୧ ।
କାହାର ସାହସ ହେବ
ଏ ମାଟିରେ ପାଦ ଦେବ
ଝରିବେ ବାରୁଦ ସିନା ଆମେ କାଳେ କାଳେ ନୂଆଁ ।୨।

ଚରଦନ ଯେ ତୁଳସୀ
ବାସେ ନା କି ହେଲେ ବାସି
ଶୃଗାଳର ମୁଖ ଦେଖି ଡରେ କରେ ସିଂହ ହୁଅ ।୩।

---

କରମ ନନ୍ଦା ସରମ କଥା ଗରମ ଦୁଅ ନରମ ନୋହ
ପରମ ପୁଲକେ ମରମ ଦମ୍ଭେ ସମର କର ଓଢ଼ଅ ସ୍ୱର
କଂସାଳ ବେଉସା ପାଶୋର ଦେଇ
କି ହେଲରେ ଅଛ ଦନେ କି ଥିଲ
ମରଦପଣିଅ ଦେଖିବ ଦୁନଅ ମରବା ପଛେ ଡରବା ନାହିଁ ।
ଯଦରେ ଅଳସ ଢଳାସେ ମାଢ
ତୋ ତୁହ ରକତ ଉଠେ ନା ତାଢ
ଲଭରୁ ଅଭସ୍ତ ହେବରେ କସ୍ତ ଧଉଳଗିର ଖୋଜରେ ଯାଇଁ,
ପ୍ରଢ ଧୂଳକଣା ପାରେ ତହିଁ ଲଭି
ବୀର ହାଡ଼ ମାଂସ ତାର ମାଟି ଗୋଡ଼
ପୁଚ୍ଛିଲେ ବଦେଶ କହବେ ସେ କାଳେ ଏ ଦେଶେ ସ୍ତୀରୁ ନଥିଲେ କେହ
ନ ଛିଣ୍ଡେ ଏ ମୁଣ୍ଡ ନ ବହୁ ଲହୁ
କେହ ନ ଅସ୍ତୁ ଏ ଦେଶକୁ ଅଜ
କୋଟିଏ କଳଙ୍କ ସେନାପଣବ ଚମକ ପଡୁ ଜଗାଇ ସୁହୁଁ ।

---

ଦୁଃଖ ଲାଗେ—ଦେଶ ଦୁରଦଶା ଦେଖି
ଭଲ ଅମ ପୋଡାମୁହଁ          ଗୁଲୁଥାଏଁ ମୁଣ୍ଡ ଟେକିଏ
ଯେ ଦେଶ ସନ୍ତାନ ରକ୍ତପାତ ଦିନେ
ଦେବାକୁ ନାରାଜ ଭୂମି ସୂଚମୂନେ
ଯହିଁ ବାଳୁତ ପୁଅ          ଭେଦେ ଚକ୍ରବ୍ୟୂହ
ଏକା ସପ୍ତରଥୀ ତୁଲେ ସେହି ଦେଶ ଅଟେ ଏକ ।୧।
ଅମଦେଶ ବୀର ଧରିଲେ ସାୟକ
ଅତଙ୍କ ଥରଏ କରମ-ନାୟକ
ମାରି କୋଟି ଶର          ଦିବସେ ଅନ୍ଧାର
ନ ପାରେ ଧରାଧାମେ ପଲକ ନ ପଡ଼ୁ ଅଖି । ୨ ।
ଶବ୍ଦ, ମନ, ଦୃଷ୍ଟି-ଭେଦ ଅଟେ ନାହିଁ
କାଳର କବଳେ ଯାଇଛି ଉଭେଇ
ଧନୁ ତୀର ଦିନେ          ଥିଲ ନାହିଁ ମନେ
ତରପେଷା ହେଲମାନ ରହିବା କରମ ଠିକି ।୩।

---

ଟାଣପଣ ରଖି ପ୍ରାଣ ପଛେ ଯାଉ
ଅଣନା ଭଗାଶ୍ରିକ ବରଣ କରି ଅଜି ।ପଦ।
ଯାଣ ପାଇବ କେ ପାଷାଣେ ଧରି ଦେହୁ
ଶାଣ ଦେଇଣ କୃପାଣ କରେ ବନ୍ଧୁ

ଜାଣ ବୀରଜାତ ଦ୍ୱାଣ କାଟେ ମାଡ
ସ୍ୱଣ ନ ଦେନଣ ଉଗାଗି ଷିର ଖାଡୁ ।୧।
ବଟେଇ ଗୃହଁ ଦନ ନୋହଇ ପ୍ରଭାର
ଚନ୍ଦ୍ରଇ କାଡ କାଡ ଅଞ୍ଚଳ ଜନନୀର
ସହଇ ବହୁ ଦୁଃଖ ରହଇ ମନ ମାର
ବହଇ ନାହିଁ ସୁଖ ମଳୟ ଅଙ୍ଗ ପର
ମନ ତାର ନ ମାନେ ଘନଶ୍ୟାମ ବସନେ
ଅଙ୍ଗ ସାଜବ ରଙ୍ଗ ବେଶରେ ଦାଉ ଦାଉ । ।୨।

## ଉଦ୍‌ବୋଧନ ଗୀତିକା

( ଜେଡ଼େ ହୃଷ୍ଟଅଟଙ୍କୁ ଲୁହିତ )

ସ୍ୱଜ ପଲ୍ଲବ କ,
କେବେ ମୋ ଜାତି-ଦମ୍ଭ-ଶିଖରୀ ? (ଧ୍ରୁବ)
ଅନଙ୍ଗ ଯପାଡ଼ ଭୁଇଁ,
ଗରବେ ଉଠିବ ଚେଇଁ,
ଗରଜେ ଦେଶସ୍ୱୀ ଯହିଁ କାନନ ମୁଖର । ୧ ।
କଳଙ୍ଗ ମୋର ଜନନୀ
ଧରଣୀର ମଥାମଣି
ବୀରପ୍ରସୂ ବୋଲି ପଢ଼େ ଜଗତେ ହୁର । ୨ ।

ଓଢ଼ଅ ପାଉବଳୁଳ
ହୋଇନାହିଁ ହ୍ମନବଳ
ଉଦରେ ମଣ୍ଡ-ବୃକ୍ଷ ଠାଣ ଲଙ୍ଗଳ ମାର । ୩ ।
ପଢଣ ମଣି ତା ଭର
ଗାରସ ଭୁଇଁ ପଥର
ପରଶୁଁ ଲଭଇ ଶ୍ୟାମ ସଙ୍ଖବ-ଶ୍ରିଶ୍ରୀ । ୪ ।
ଥାଉ ଏ ପୃଅ ମାଆର
ରତନ ମୁକୁଟ ବର
ଦରଅ ଲଙ୍ଗେ କାପାଣି କରିବ କି କୁର ? । ୫ ।
ଥରିବ ତା ନେନ୍ଦ ବେନ
ସ୍ଥିର ନୋହୁବ ଧମଣୀ
ଲଙ୍ଗଳ ତେଜ ଧାଇଁବ ଖଣ୍ଡା ଛଅର । ୬ ।
ଭୁଜ ନାହିଁ ବୁଳସ୍ତ
ତେଜ ନାହିଁ ଖଣ୍ଡାପ୍ରୀତ
ଖଣ୍ଡାସ୍ତୁତ ନାମ ତାର ଦେବ କି ଗଡ ? । ୭ ।
ଯେଉଁ ସିନ୍ଧୁ ମୋ ଦେଶର
ପଦ ଧୂଏ ନିରନ୍ତର
ତହିଁ କି ଭ୍ରମିବ ଶତ୍ରୁ ବୋଇତ ଧାଡ଼ି ? । ୮ ।
ନୀଳଚକ୍ର ନୀଳାଚଳେ
ନଚ ନାଶି ମଣ୍ଡପତଳେ
ଦରସିକେ ମୋ କାଠକୁଦ-କବଚ ପରି । ୯ ।

ଥାଉଁ ଏ ଚକ୍ର ଅମର
ଥାଉଁ ଏ ବଡ଼ ଦେଉଳ
ଅମ କାଢମାନ କେବେ ଯିବ କି ବୁଡ଼ି ? । ୧୦ ।

---

## ଉଦ୍‌ବୋଧନ ଗୀତିକା

(କେଡ଼େ ହର୍ଷଅରେ ବୃନ୍ଦେ)

ଶୁଣ ନାହିଁ ଅଜ,
ଜାତି ମାନ ରଖ ତୋର । ( ଧ୍ରୁବ )
ସ୍ୱଗକୁ ତୋ ବାରବାଟୀ
କୋଣାର୍କ ହୋଇଛି ମାଟି
କାଢ ଗନ୍ତାଘର ତୋର ହୋଇଛି ଚୁର । ୧ ।
ଲୁହଟ ଓଡ଼ିଆ ପୁଅ
ଲଙ୍ଘି ସାତ ସିନ୍ଧୁସୁଅ
ଗରବେ ଭସାଉଥିଲୁ ବୋଇତମାଳ । ୨ ।
ସେ କାଢ ରକତ ତୋର
ଧମନୀ ବହୁ ନାହିଁ ସ୍ଥିର ?
ସିଂହଦ୍ୱାରେ ତୋର ଦେଖ ଶୃଗାଳ ପଲ ।୩।
ତୋ ଦେଶ ସାଗର ନଦୀ
ମହୋଦଧି ମହାନଦୀ
ପର ପଦାନତ ହେବ ବଡ଼ ଦାଣ୍ଡ ତୋର । ୪ ।

ନୀଳାଚଳେ ରଜ୍ଜୁବାନ୍ଧା
ଛିନ୍ନ ଜଗତର ନାନ୍ଧା
ସବୁଙ୍କୁ ଦେଉଥିଲେ ତୋର କାହାକୁ ଡର ? ।୫।
କୋଟିଏ କଳା ପାହାଡ଼
ଗଲେଣି ବଢ଼ ଦେଉଳ
"ବଢ଼" ହୋଇ ପ୍ରଚାରଇ ସାମ୍ୟ-ମନ୍ତ୍ର ସାର । ୬ ।
ଲଭ ଏ ଶୁଭ ମନ୍ତ୍ରର
ପୁଲକେ ଭର ଅନ୍ତର
ମହୋଦଧି କୂଳେ ଅଛି ହୁଅରେ ଠୁଳ । ୭ ।
କଳଙ୍କ ଏ ଦେବ ଭୂଇଁ
ଶତ୍ରୁ କି ପଶିବ ତହିଁ
ଦେବତା ହୋଇବ ଏଥି ଯୁଦ୍ଧେ ଅଗ୍ରସର । ୮ ।

---

## ଆହ୍ୱାନ ସଙ୍ଗୀତ

ହେ ଉତ୍କଳବାସୀରେ, (ତୁମ୍ଭେ) ଅରିଗିରି ଚୂର କଲ ତେଜପଦରେ,
ଥୋଇଯା ଅମର ଯଶ ଏ ପୃଥିବୀରେ । ପଦ ।
ଜନନୀ ରକ୍ଷଣେ କ୍ଷଣେ ନ କର ହେଳ,
ବାହାର ଭୈରବରବେ ବଜାଇ ଭେରୀ,
କରିବା ପାଇଁ ସମର ବାନ୍ଧ ଉତ୍ସାହେ କମର
ଦବିଯାଉ ରିପୁ ନବଶ୍ରମ ଛବରେ । ୧ ।

ପର କଥା ଥାଉ ତୁଚ୍ଛେ ସାରା ଦୁନିଅ,
ତୁମ୍ଭର ଅତୀତ ଦେଖି ହେଉ ଲଜିଅ,
ଓଡ଼ିଆ ଜାତି ମହିମା ଓଡ଼ିଆ ଜାତି ଗରିମା
ଲିଖେ ଅଛି ସବୁ ପାଷାଣ ପଟ୍ଟରେ । ୨ ।
ପୂର୍ବର ଗଉରବ ବିକ୍ରମ ଖ୍ୟାତି,
ଏବେ ଭୁଲିଲେ ନାହିଁ କି ଗରବେ ଛାତି ?
ତୁମ୍ଭେ ସେହି ବଂଶଧର ଅଳସ ଭାବ ନ ଧର
ଅସିକଣ୍ଠରେ ପଣ ଖରେ ଶତ୍ରୁ ଛିଦରେ । ୩ ।
କରଛଣରୁ ସାହସେ ଜନମ ଧରି,
ସରସ ହରଷେ ହେଉ ଅକଣ୍ଠ ଭରି,
କରି ନିଖିଳ ହରଷ ଧନ୍ୟବାଦେ ମୁଖରିତ
ଫିଟୁ କଣ୍ଠ ବାଣୀ ବନ୍ଦନା ଗୀତରେ । ୪ ।

(ରାଗ—ପୂରବୀ, ଅଠତାଳି)

ଏହି ପରି, ପୁଣ୍ୟ ଜଗତକୁ ବସୁନ୍ଧରା ରେ । ପଦ ।
ଜନପଦରେ ଯେ ବୋଲାଏ 'ଶେବଧି'*
ବିରାଜିତ ଯହିଁ ଶାନ୍ତି ନିରବଧି
ପଖାଳେ ଯାହାର ଚରଣ ଜଳଧି
ତୁଙ୍ଗଭଙ୍ଗ ପରମ୍ପରା-ରେ । ୧ ।
ଯାର ଦରଶନେ ଅମରାବତୀଙ୍କୁ
ସ୍ମରୁ ବୋଲି କେହି ନ ଆଣେ ମତିକି

* ଶେବଧି—ନିଧି ।

ରାଜରାଜପୁର ଶୋଭା ସମ୍ପଉଜ
ହସେ ଯାର କ୍ଷୀର † 'ପର୍ବ' ରେ । ୨ ।
ବ୍ରାହ୍ମୀ ବୈତରଣୀ ଚିତ୍ରୋତ୍ପଳା ଦ୍ୱାର
ସମାନ ଯା ବକ୍ଷେ କରନ୍ତି ବିହାର
ଉଦାର ବିବିଧ ଶସ୍ୟକ୍ଷେତ୍ର ଯାର
ଚିରକାଳ ଉର୍ବର ରେ । ୩ ।
କର୍ଣ୍ଣ ରସାୟନ ଅମୃତ ସରିତ
ପରସ୍ୱେ ମଧୁର ଯାହାର ଚରିତ
ଯେ ପୁଣ ଅମିତ ଭୁବନ ବିଦିତ
ଶିଷ୍ଟଜନ ମନୋହର ରେ । ୪ ।
ଯହିଁ ନୀଳାଚଳ ଶୃଙ୍ଗେ ଅଧିଷ୍ଠିତ
ଜଗନ୍ନାଥ ଭ୍ରାତୃ ଭଗିନୀ ସହିତ
ଦାମୋଦର ଭକ୍ତେ ଶ୍ରୀପଢ ପଢିତ
ଗଢ ମୁକୁଟ ପସର ରେ । ୫ ।

---

( ସଦନ୍ଦ ଦେଶ ନେନ୍ଦ ମୋହର ରେ, ପ୍ରାଣସଙ୍ଗିନୀ—ବୃତ୍ତେ )

ତୁମାର ମାର ସାର ଭରଥ ହେ, ଜାଗ ଉତ୍ସାହେ,
ପରୁବ ଗଜରବେ ଭାବ ରଣପରବେ
ସ୍ୱରବେ ଗାଇ ଜୟ ନିରତ ହେ । ଜାଗ ଉତ୍ସାହେ ।ପଦ।

---

† ପର୍ବ—ଶ୍ରେଷ୍ଠ।

ତା ଧିନ ଧିନ ଧିନ ନାଚୁ ସାରା ମେଦନୀ
ଏଇ ମାତୃବନ୍ଦନରେ ଉନମାଦନୀ
ବଜାଇ କୁଷ୍ଟ ବେଷ୍ଟ ବୃଷ୍ଟ ମୃଦଙ୍ଗ ରଙ୍ଗିଣୀ
ଦେଖାଅ ବୀରବର ବରତ ହେ । ୧ ।

ସ୍ୱଦେଶ ରକ୍ଷା ପାଇଁ ସମରେ ହୋଇ ବାଇ
ରାଣୀ ଶ୍ରୀ ଦୁର୍ଗାବତୀ ଶ୍ରୀମତୀ ମିରାବାଈ
କାହାର ଥିଲେ ନାଶ ହୋଇ ବଡେ ତ ଯାଇ
ଅମର ଦେହେ ସେହି ରକତ ହେ । ୨ ।

ବଢ଼ି ଯାଉଛି ପାପ— ଅବୃଷ୍ଟି ଅବ ଧାପ
ଅସ ବାନ୍ଧ କମର ତେଜ କାର୍ଯ୍ୟ କଳାପ
ଛଳେଇ ତବ ନବ ଅମାପ ପରତାପ
ହେଜ ସେ ପ୍ରଭାବସ୍ୱେ ଅରତ ହେ । ୩ ।

---

ଉଠ ଉଠ ଉତ୍କଳ ବୀରମଦେ ଗରଜ ।
ଅପସରନ୍ତୁ 'ପରେ' ଅଉ 'ଅଛି' ❀ ବରଜ ।ପଦ।
ସହାନ୍ତୁଭୂତି ବଳେ, ଲୁ ସାରା ଧରାତଳେ
ହୃଅ ବଶ୍ୟ ବିଶ୍ୱ ତ ସ୍ୱଜବଳ୍ଭ ଅଟଳ । ୧ ।
ତବ ବାଡବ ସର, ତେଜ ପୁଞ୍ଜ ପ୍ରସର
ଦଳନ କରୁ *'ପରପନ୍ଥୀ' କୁଳ ମରଣ ।୨।
ଗଗନେ ପନ୍ତ ପନ୍ତ, ଛକସୁ ବୈଜୟନ୍ତୀ
ଉଚ୍ଚ ସୁର ସରତ ତରଙ୍ଗରୁ ତରଜ । ୩ ।

---

❀ ଅଛି—ସୁଖ, * ପରପନ୍ଥୀ—ଶତ୍ରୁ

ସରସ ହରଷରେ, ନଗ୍ନଜ ମାନସରେ
ଡାକ ଖଡ୍‌ଗଧାର ଚର ଶାନ୍ତ ସରଜ । ୪ ।

---

( ଅଙ୍କ ଏ ସୁଖ ବାସରେ—ବୃନ୍ଦେ )

ଓଡ଼ିଆ ବୀର ସରବେ,
ଜାଗ ଜାଗ ଜାଢ ଗଜରବେ, ଅ-ଅରବେ ।

ଜୟ ଭୂପତି ଜୟ ଭୂପତି ଗାଇ ସମର ପରବେ । ପଦ ।
ଜାପାନ ଇଟାଲି ପୁଣ ଜରମାନ
ହତାଶେ ସାଧୁସେ ହୋଇ କମ୍ପମାନ
ଦାକ ସୃତ ଧନ କର ବିସର୍ଜ୍ଜନ
ଲୁଚନ୍ତୁ ଗହନେ ନୀରବେ । ୧ ।

ସୁଯୋଗ୍ୟ ସନ୍ତାନଗଣର ଗରିମା
ପ୍ରକୃତ ଉତ୍କଳ-ଜନନୀ ମହିମା
ଶୁଦ୍ଧ ବାରତାର ଶ୍ରବଣେ ମାତାର
ପୁଲକ ହୃଦୟ ଗରବେ । ୨ ।

---

( ଧୀରେ ଧେନ ଧୀରେ ବୃନ୍ଦେଶ୍ୱରୀ—ବୃନ୍ଦେ )

ଅଛ ଗଲେ ସଖି, ଦୂରଦେଶେ,
ବରବେଶେ ନୁହେ ବୀରବେଶେ ।
ମୋ ପରାଣମଣି ନୟନରୁ ପାଣି
ପୋଛି କହିଲେ ସେ ହସି ହସି;
ଅଗୋ ପ୍ରିୟସଖି,
ଯୁଦ୍ଧ ଜିଣି ଫେରିବି ମୁଁ ଶେଷେ । ୧ ।
ଦେଲି ସେ କପାଳେ ମୁଁ ଚନ୍ଦନ,
ଶତ୍ରୁ ହେଲା ମୋର ଛନ ଛନ ।
ମନ ହେଉ ସତେ ଧରିବି କି ହାତେ
ତାଙ୍କ ଭଲ୍ଲ ନଳୀ ଗୁଳମାନ;
ଅଗୋ ପ୍ରାଣସଖି,
ମୁଁ ପରା ତାଙ୍କର ଅଧେ ପ୍ରାଣ । ୨ ।
କହିଲି ହେ ଯାଅ ଯାଅ ଦୂରେ,
ଦେଶ ଡାକ ଦଏ ଏ ଅନ୍ତରେ ।
ଲଙ୍କା ସିନ୍ଧୁ ଗିରେ ଅସାମ କାନ୍ତାରେ
ବଇରୀ ଜନରେ ତଡ଼ି ଦୂରେ
ଅହେ ପ୍ରାଣେଶ୍ୱର,
ରକ୍ତଟୀକା ନେବ ଏ କପାଳେ । ୩ ।
ଏ ଦେଶ ମାଟିରେ ସେ ପାପୀଙ୍କି,
ଥାନ ଦେଇ ପୋଡି ଦେବ ତାଙ୍କି ।

ଋତୁବୋଲା ଦେହେ ଫେରିବ ଯେବେ ହେ
( ନ୍ ରଣି ସମରେ ଅରି ବାଘ ।
ଅହେ ପ୍ରାଣେଶ୍ୱର,
ଘାଷ୍ଟେଛି ଧରିବ ବୋଲେ ଯାହ । ୪ ।
ହସି କହିଲେ ସେ ରହ ରହ,
ଫେରିବ ଯେବେ ମୁଁ ପ୍ରାଣସଖି ।
ମୋ ଅଙ୍ଗ ଭୂଷଣ ଶତ ଯତ ଚିହ୍ନ
ପୂରିଯିବ ତୁମ ମୁଖ ଚାହିଁ
ଅଗୋ ପ୍ରେମମୟୀ,
ଯାଏ ଦେଶ ପ୍ରେମେ ମୁଁ ଗାଧୋଇ । ୫ ।
ମୋ ପ୍ରୀତିମୁହୂର୍ତ୍ତ ରଣି ଘରେ,
ଯାଉଛି ଗୋ ଅଛି ମୁଁ ସମରେ ।
ବିଜୟୀ ବରରେ ଫେରିବ ମୁଁ ଯେବେ
ମୁହୂର୍ତ୍ତ ଦେଖିବ ଅଜ୍ଞ ଥରେ,
ଅଗୋ ପ୍ରାଣସଖି
ତୁମେ ସେ ମୁହୂର୍ତ୍ତ ଏ ଅନ୍ତରେ । ୬ ।

---

( ଝୁଲିଅ ଗୋ କଣୋଗି ବାଲ୍ଲା—ତୁଡେ )

ଛାଡ଼ ଦେ ଗୋ ଦେଖିବ ଯାଇ,
ମତ ମତ ଗୃଜଯାଏ ଦାଣ୍ଡେ ବେ ବାହି ।

ଶିରେ ତାର ଲମ୍ବା ଟୋପି ହାତେ ବନ୍ଧୁକ।
ଦେଖିଲେ ଗୋ ନାଚ ଉଠେ ଦେହଟା ଯାକ ॥
ଗମ ଗମ ଝାଳ ମୁହଁ ଝରି ପଡ଼ୁଛୁ ।
ଅଙ୍ଗେ ତାର ଫର ଫର ବାନା ଉଡ଼ୁଛୁ ॥
ଘୋଡ଼ା ପଥରକୁ ଦଳ ଗୁଳଛ ସେ ତ ।
ଚାହିଁଲେ ବସେବ ମିତ ବଳଛ ଡେରୁ ॥
ମିତ ଯେଉଁଣେ ଯିବ ମୁଁ ତ ଯିବ ତା ପଛେ ।
ଉଡ଼ିଲେ ଉଡ଼ିବ ମୁହିଁ ଅକାଶେ ଉଛେ ॥
କ ସୁନ୍ଦର ଗୀତ ଗାଏ ପଦ ପଦକ ।
ମନେ ମୋର ଲାଗିଗଲ୍ଲ ସତେ ପଦକ ॥
ସେ ଗୋ ପର ଯୁଦ୍ଧ କରେ ଜାପାନୀ ତୁଲେ ।
ମୁଁ ବ ହର୍ଷ ଯିବ ମାଅ ନଲୀ ଧଇଲେ ॥

---

( ପ୍ରିୟା କ କଲେ ଏ ବାଟରେ—ବୁଝେ )

କେଡ଼େ ଦମ୍ଭକାଣ୍ଡ ଛାଡରେ ।
ଯୁଦ୍ଧେ ଗଲ୍ଲ ପୁଅ ମାଡରେ ।
ଝପି ପଡ଼ୁଥିବା ଯଣ ଚେଳମାନ
ରଖିଲ୍ଲ ଓଡ଼ିଅ କାଛରେ । ୧ ।
ଗୃହ ଛଡ଼ା ଧନେ ଯା'ର,
ନ ଥିଲ୍ଲ ଅନ ବଗୃହ ।

କେ ଯନ୍ତ ବହନ୍ତି          କେ କାନେ କହନ୍ତି
ଅଗକୁ ପଶିନ୍ତି ଧସିରେ ॥
ପଛରେ ରହନ୍ତି ସବ,
ପ୍ରିୟା ପ୍ରୀତି ଅପଣାର ।
ଅଗରେ ଦଶିନ୍ତି          ଦେଶ ମାତାରୂପ
ହୃଅରେ ଜାଗୁଛ ଅତ ରେ ॥
ଦନେ ତା ଦେଶର ସ୍ୱର,
ଗଙ୍ଗାକୂଳେ ଧାଇଁ ଯାଇ ।
ଅବ ବଧିଥିନ୍ତି          ଧରିଥିନ୍ତି ଅସି
ସେ କଥା ସ୍ମରନ୍ତି ବସି ରେ ।
ପଶ୍ଚିମେ ଦେଖିନ୍ତି ରଣ,
ପୂର୍ବେ ଜାପାନର ପଣ ।
ଏତେବେଳେ କବି          ଘରେ ବସିପାରେ
ଦେଖି ମାତା ଦୁଃଖରାଶି ରେ ॥



# ଜୟ ଗୀତ

ରାଗ—ଭୈରବୀମିଶ୍ର, ତାଳ-କହରବା

ଜୟଗୀତ ଗାଅରେ ଜନମଭୂମି ମା'ର ମୋର ।
ଗଗନ ପବନ ଭର ଗମ୍ଭୀର ନାଦେ ଧ୍ୱନିତ କର ପଲ୍ଲୀ ପୁରୀ ପଦା
ଉତ୍ସବମୟ ଅଛ ଏ ସୁଦିନେ,
ପୁଲକ ସ୍ପନ୍ଦନ ଜାଗେ ପ୍ରାଣେ ପ୍ରାଣେ;
ଟାଣିଦେଲା ଉତ୍କର୍ଷର ଅଭିମାନ ଯା' ସୋହାଗ ସ୍ନେହ-ଡୋର ।୧।
ଧର୍ମର ଶର ରୁଚିର ପୀଠେ ଅଧର୍ମ, ବିଦ୍ୱେଷ, ବାଦ,
ଟେକିବ ତାହିଁ ଟେକ ନିଶାଣ, ହିଂସାପ୍ରଣୋଦିତ ସାଧ
ଶତ ମୁସୋଲିନୀ ଉପରେ ମିଶିବେ ସେ ଯେ ପ୍ରେମ ଅକୂପାର ।୨।
କି ହେଉ ଦେଖିବ ହିଟଲର ଧ୍ୱଂସ,
ଜାପାନର ସଙ୍ଗେ, ସରଜ ଏ ନାଟ;
ନରେଶ-କୁଳ-ମୁକୁଟ ବୃଟିଶ-କେଶରୀ ସମ୍ରାଟ ଯା'ର—
ଶ୍ୟାମଳୀ ମା' ମୋର ହସେ ଦ୍ୱାରେ ଅଛ ସରସେ ଅନିବାର ।୩।
ଦିଗଦିଗନ୍ତେ ଶରତଶ୍ରୀର ଅମିୟ ଶୁଭ୍ର ଶୋଭା,
ବିଶ୍ୱଯାଏ ରେ ପସରା ରେଣୁ ସଗରେ ମନଲୋଭା
ପଗାଟୀ [illegible] ।୪।

---

ରାଗ—ତୋଡ଼ି ପରଜ, ତାଳ-ଖେମଟା।

ଦେଖ ଖସିଲ ରେ, ଚକର ଗଳଛ ଅଖ ।
ଅଖ ଲାଗିଗଲେ ଅଟେ ଅଟେ ଖସି ପଡ଼ିବଟି ଦୁଲ ଚଳ । ପଦ ।

ନାଭ ଦାନ ମୋଢ଼ ବୋଲଇ ଭଟାଙ୍କ "ମିତ୍ରଗଣ ମୋତେ ରଖ,
ମୋର ପ୍ରାଚୀନତା, କଳାକୁଶଳତା, ନ କର ଅଗ୍ନି ପରଖ" ।୧।

ପରଦେଶ ପରଧନ ଶୋଷଣର ଲଅଇଲ ଷେଣ୍ଡି ଅଖ,
ସତ୍ୟ ଏବେ ନାଭ ତା'ର ମଜା ଗୃଖ ନିଜ ଦେଶ ନିଜେ ରଖ ।୨।

ଭୈରବ ଜଗନ୍ନାଥ ସୃଷ୍ଟି ଅତଚାତ କରନ୍ତି ଶୂନ୍ୟରେ ରହୁ,
ସ୍ଥିର ମାନବର ଦମ୍ଭ ଅହଙ୍କାର ନ ପାରନ୍ତି ସେହୁ ସହୁ ।୩।

ହେ ରଣକୌଶଳ ତାଙ୍କୁ ଅବହେଳ ନ ଛାଡ଼ିବ କେବେ କେହୁ,
ଗାଅ ହେ ତାଙ୍କର ଜୟ ଅନିବାର ହସ୍ତିଶାଳି । ଏବା ସେହୁ ।୪।

---

ଶ୍ରୀବ୍ରଜସୁନ୍ଦର ଦାସ, ବି. ଏ. (ଏମ. ଏଲ. ଏ.)

---

Printed by A. C. Mishra, the Satyabadi Press,
Cuttack—1943